# ଯେ ପ୍ରାଣଧରେ ପର ହିତେ



ଓଡ଼ିଶା ଜଗନ୍ନାଥ କମ୍ପାନୀ, କଟକ

# ଯେ ପ୍ରାଣଧରେ ପର ହିତେ

ଲେଖକ
ଶ୍ରୀ ସରୋଜ କୁମାର ସିଂହ ଏମ୍. ଏସ୍. ସି, ଏମ୍. ଫିଲ୍.
ଅଧ୍ୟାପକ, ରେଭେନ୍‌ସା କଲେଜ, କଟକ

ପ୍ରକାଶକ
ଓଡ଼ିଶା ଜଗନ୍ନାଥ କମ୍ପାନୀ
ବାଲୁବଜାର, କଟକ—୨

# ଯେ ପ୍ରାଣ ଧରେ ପର ହିତେ

( ବଣ ଜଙ୍ଗଲର କାହାଣୀ )

( The book particularly Contains the Topic "Conservation of the Environment" keeping in view with "Operation Black Board Scheme.")

ନୂତନ ମୁଦ୍ରଣ : ୧୯୮୮

ମୂଲ୍ୟ :

ଛଅଟଙ୍କା

ମୁଦ୍ରାକର :

**ଶ୍ରୀ ଶ୍ରୀ ଅନନ୍ତ ପ୍ରେସ୍,**

ବଡ଼ାନାଘୀ କଟକ—୧

# ବହି ବିଷୟରେ —

ଆଜି ମଣିଷ ନିଜର ସୁବିଧା ମେଣ୍ଟାଇବା ପାଇଁ ଅତି ନୃଶଂସ ଭାବେ ଜଙ୍ଗଲରୁ ଗଛ କାଟି ପକାଉଛି । ତଦ୍ୱାରା ଜଙ୍ଗଲଗୁଡ଼ିକ କ୍ରମେ ଲୋପ ପାଇବାରେ ଲାଗିଛି । ଏହି ଅନୁପାତରେ ଜଙ୍ଗଲ ହଣାଗଲେ, ଅଳ୍ପ ବର୍ଷ ମଧ୍ୟରେ ପୃଥିବୀ ପୃଷ୍ଠରୁ ଜଙ୍ଗଲ ଶୂନ୍ୟ ହୋଇଯିବ । ତାପରେ ଯେଉଁ ଭୟାବହ ପରିସ୍ଥିତି ସୃଷ୍ଟି ହେବ, ତାହା ଆଜି ସମସ୍ତଙ୍କର ଚିନ୍ତାର ବିଷୟ ହୋଇଛି ।

ତେଣୁ ତହିଁରୁ କିପରି ନିସ୍ତାର ମିଳିବ, ତାହାହିଁ ଏ ପୁସ୍ତକର କଥାବସ୍ତୁ । ଗାଁ ପାଖକୁ କିପରି ଜଙ୍ଗଲର ଫେରାଇ ଆଣିବାକୁ ପଡ଼ିବ; ଏଥିପାଇଁ ପିଲାମାନଙ୍କୁ ସଚେତନ କରିବାକୁ ପୁସ୍ତକଟି ଉଦ୍ଦିଷ୍ଟ ।

ପୁସ୍ତକଟି ସର୍ବଜନ ସବୁ ଶ୍ରେଣୀର ଲୋକମାନଙ୍କ ପାଇଁ ସୁଖପାଠ୍ୟ ଓ ଶିକ୍ଷଣୀୟ ହେବ ବୋଲି ଆଶା, ବିଶେଷତଃ ଏହା ଛାତ୍ରଛାତ୍ରୀ ମାନଙ୍କ ପକ୍ଷରେ ବିଶେଷ ଉପଯୋଗୀ ହୋଇପାରିବ ।

ଗ୍ରାମ୍ୟ ପାଠାଗାର ଓ ସ୍କୁଲ ପାଠାଗାର ଏବଂ ଅପରେସନ ବ୍ଲାକ୍‌ବୋର୍ଡ ସ୍କିମ ପାଇଁ ପୁସ୍ତକର ଗୁଣାତ୍ମକ ମୂଲ୍ୟବୋଧ ଅପରିହାର୍ଯ୍ୟ ।

ପାଠକ ପାଠିକାମାନଙ୍କ ଦ୍ୱାରା ଏ ପୁସ୍ତକଟି ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ ବୋଲି ଆଶା ।

ବିନୀତ

**ଲେଖକ**

# ସୂଚୀପତ୍ର

# ଗଛ ମଣିଷର ଗୁରୁ

ଆମ ଭାଗବତରେ ଗୋଟିଏ ପଦ ଅଛି –

ଧନ୍ୟ ଜୀବନ ଏ ଜଗତେ
ଯେ ପ୍ରାଣ ଧରେ ପରହିତେ ॥

ଏହି ମୂଲ୍ୟବାନ କଥାଟି କହିଛନ୍ତି ପରମ ସାଧକ ଅବଧୂତ । ତାଙ୍କ ଜୀବନରେ ସେ ଚବିଶ ଜଣ ଗୁରୁଙ୍କୁ ମନେ ମନେ ବରଣ କରିଥିଲେ । ସେମାନଙ୍କ ମଧ୍ୟରୁ 'ବୃକ୍ଷ'ହିଁ ଥିଲେ ଜଣେ ଗୁରୁ । ଏହି ବୃକ୍ଷକୁ ଅବଧୂତ ଗୁରୁ ରୂପେ ଭକ୍ତି କରୁଥିଲେ । ବୃକ୍ଷଠାରେ ବହୁ ମହତ୍ ଗୁଣ ପୂରି ରହିଛି ।



ପରୋପକାର ଗୁଣଟିକୁ ସେ ବୃକ୍ଷଠାରୁହିଁ ଶିକ୍ଷା କରିଥିଲେ । ତେଣୁ ବୃକ୍ଷକୁ ସେ ଗୁରୁରୂପେ ବାଛିଥିଲେ ।

କେଉଁ ଆଦ୍ଦମ ଯୁଗରୁ ଏହି କଥାଟି ଏବେ ବି ଓଡ଼ିଆ ଜାତି ଭାଗବତରୁ ପାଠ କରୁଛି । ଗଛକୁ ଆଜି ମଧ୍ୟ ଭାରତରେ ପୂଜା କରୁଅଛନ୍ତି । ବିଭିନ୍ନ ଜାତିର ଲୋକ ବିଭିନ୍ନ ଗଛକୁ ଦେବତା ବୋଲି ପୂଜା କରୁଅଛନ୍ତି । ଅନେକ ଦେବା - ଦେବୀ ଏହି ଗଛ ମୂଳରେ ପ୍ରତିଷ୍ଠା ହୋଇଅଛନ୍ତି । ଦେବା - ଦେବୀଙ୍କ ସହି ଗଛ ମଧ୍ୟ ପୂଜା ପାଉଛି ।

କିନ୍ତୁ ମଣିଷ କ୍ରମେ ଗଛର ଉପକାର ଭୁଲିଯାଇ ତାକୁ ହାଣି ପକାଉଛି । ଖାଦ୍ୟ ରାନ୍ଧିବା ପାଇଁ ତାହାର କାଠକୁ ଜାଳି ଚୂଲେ ବ୍ୟବହାର କରୁଛି । ବୃକ୍ଷଗୁଡ଼ିକୁ ଧ୍ୱଂସ କରି ଚାଲିଛି । କ୍ରମେ ଗଛ ସଂଖ୍ୟା କମି ଯାଉଛି । ଜଙ୍ଗଲ ସବୁ ପଦା ହୋଇ ଯାଉଛି ।

ବଣଜଙ୍ଗଲରେ ବଡ଼ ବଡ଼ ଗଛ ବଢ଼ି ଉଠେ । ଗଛକୁ ଆମେ କାଟି ପକାଇଲେ ଜଙ୍ଗଲ ରହିବ କିପରି ? ଜଙ୍ଗଲ ସଫା ହୋଇଗଲେ ଆଉ ବର୍ଷା ହେବ ନାହିଁ । ଦେଶରେ ମରୁଡ଼ି ଓ ଦୁର୍ଭିକ୍ଷ ଦେଖା ଦେବ । ମଣିଷ ଏହି ଭୟାବହ ପରିଣତିକୁ ଡାକି ଆଣୁଛି । ତେଣୁ ଆମ୍ଭେମାନେ ଏହି ବିପଦ ପ୍ରତି ସତର୍କ ହେବା । ଗଛ କାଟିବା ନାହିଁ ।

ଆମ୍ଭେମାନେ ସାଧାରଣତଃ ଟଙ୍କା ସୁନାକୁ ସାଇତି ରଖୁ । କିନ୍ତୁ ଟଙ୍କା ସୁନା ଅପେକ୍ଷା ଗଛଲତା ଓ ଅନ୍ୟାନ୍ୟ ଉଦ୍ଭିଦ ଅଧିକ ମୂଲ୍ୟବାନ । ତେଣୁ ଗଛର ଅନ୍ୟ ନାମ ବନ୍ୟ-ସମ୍ପଦ । ଏହାକୁ ଆମ୍ଭେମାନେ ସାଇତି ରଖିବା ।

ଆମେ ସମସ୍ତେ ରାମାୟଣ ପଢ଼ିଛୁ । ରାମଚନ୍ଦ୍ର ପିତୃସତ୍ୟ ପାଳନ କରି ଚଉଦ ବର୍ଷ ବଣରେ କଟାଇ ଥିଲେ । ବଣର ସୌନ୍ଦର୍ଯ୍ୟ ଉପଭୋଗ କରି ସେ ସବୁ କଷ୍ଟ ଭୁଲିଯାଇ ଥିଲେ । ମଣିଷର ଦୁଃଖ ବେଳେ ଗଛ ଲତା ସବୁ ଯେପରି ତାକୁ ବହୁତ ସାନ୍ତ୍ୱନା ଦିଏ । ମଣିଷର ସୁଖଦୁଃଖର ସାଥି ଏଇ ଗଛ ଲତା । ଆମେ ସମସ୍ତେ ମିଶି ଏହି ଅମୂଲ୍ୟ ସମ୍ପଦକୁ ରକ୍ଷା କରିବା ।

# ଗଛର ଉପକାର

ମଣିଷ ଜନ୍ମ ହୁଏ । କାଠ ଦୋଳରେ ଝୁଲେ । ପୁଣି ମରିଗଲେ କୋକେଇରେ ବନ୍ଧାହୁଏ । ଶ୍ମଶାନରେ କାଠଦ୍ୱାରା ପୋଡ଼ା ହୁଏ । ମଣିଷର ଜନ୍ମଠାରୁ ମରଣ ପର୍ଯ୍ୟନ୍ତ କାଠ ସବୁବେଳେ ଦରକାର ।

ମଣିଷ ଘର ତିଆରି କଲେ କଡ଼ି ବରଗା ପାଇଁ କାଠ ଆଣେ । ଜଙ୍ଗଲରେ ଥିବା ଶାଳ, ପିଆଶାଳ, ଶାଗୁଆନ କାଠ-ଆଦି ଭାରି ଶକ୍ତ । ସମସ୍ତଙ୍କ ଘରେ ଟେବୁଲ, ଚୌକି ବେଞ୍ଚ



ଇତ୍ୟାଦି ପଡ଼ିଛି । ମଣିଷ ଖଟ ଉପରେ ଶୋଉଛି । ଆଲମାରୀରେ ଜିନିଷ ରଖୁଛି ।

ରେଳପଥରେ ଏହି ଶକ୍ତ କାଠପଟା ବ୍ୟବହୃତ ହେଉଛି । ନଦୀରେ ଭାସୁଥିବା ଡଙ୍ଗା କାଠରେ ତିଆରି । ସମୁଦ୍ର ଜାହାଜ ପାଇଁ ମଧ୍ୟ କାଠ ଦରକାର । ଏମିତି ବହୁ ଦରକାରୀ କାର୍ଯ୍ୟରେ ମଣିଷ ପ୍ରତିଦିନ କାଠ ବ୍ୟବହାର କରୁଛି ।

ସବୁଠୁ ବଡ଼ କଥା ହେଲା କାଗଜ । ମଣିଷ ବହି ପଢ଼ି ବିଦ୍ୟା ଅର୍ଜନ କରୁଛି । ବହି ନପଢ଼ି ଥିବା ଲୋକ ମୂର୍ଖ । ତେଣୁ ପ୍ରତ୍ୟେକ ମଣିଷ ବହି ପଢ଼ି ଶିକ୍ଷିତ ହେବା ଉଚିତ । ଏହି ସବୁ ବହି କାଗଜରେ ତିଆରି । କାଗଜରେ ଆମେ ଚିଠି ଲେଖୁଁ । କାଗଜ ନଥିଲେ ସ୍କୁଲ, କଲେଜ, ବ୍ୟବସାୟ ଚାଲିପାରନ୍ତା ନାହିଁ ।

ଏହି କାଗଜ କାଠ ମଣ୍ଡରୁ ତିଆରି ହୁଏ । କାଠ ନଥିଲେ କାଗଜ ହୁଅନ୍ତା ନାହିଁ । କାଗଜ ନଥିଲେ ଆମେ ମାନେ ଶିକ୍ଷିତ ହୁଅନ୍ତୁ ନାହିଁ । ଅନ୍ୟ ଦେଶ ତୁଳନାରେ ଆମେ ପଛରେ ପଡ଼ିଯାନ୍ତୁ ।

ଅଧିକାଂଶ ଲୋକ ଗ୍ରାମରେ ରୁହନ୍ତି । ଏମାନେ ରାନ୍ଧିବା ପାଇଁ ଜାଳ ଦରକାର କରନ୍ତି । ସହର ଲୋକମାନେ ବି ଜାଳ ପାଇଁ କାଠ କିଣନ୍ତି । ଜାଳେଣୀ କାଠ ପାଇଁ ପ୍ରତିବର୍ଷ ହଜାର ହଜାର ଗଛ କଟା ହେଉଛି ।

କୃଷକ ହଳଲଙ୍ଗଳ ପାଇଁ କାଠ ଦରକାର କରେ । ଶଗଡ଼ ଗାଡ଼ିଟିଏ ଗାଁରେ ନିହାତି ଦରକାର । ଇମିତି ଭାବେ ଜୀବନର ପ୍ରତି ମୁହୂର୍ତ୍ତରେ କାଠ ପ୍ରୟୋଜନ ।

ପୂର୍ବେ ଲୋକମାନେ ବିଶ୍ୱାସ କରୁଥିଲେ ଯେ କାଠ କେବେ ସରିଯିବ ନାହିଁ । ଯେତେ କାଟିଲେ ବି ଗଛ ପୁଣି ବଢ଼ି ଉଠିବ । ଅବଶ୍ୟ ସେତେବେଳେ ଆମ ଦେଶରେ ଏତେ ଲୋକ ନଥିଲେ । ଅଳ୍ପ ଲୋକଙ୍କ ପାଇଁ କାଠ ସୁବିଧାରେ ମିଳୁଥିଲା । ଜଙ୍ଗଲରୁ ସେମାନେ ନିଜ ବ୍ୟବହାର ପାଇଁ କାଠ ପାଉଥିଲେ ।

କିନ୍ତୁ, କ୍ରମେ ଦେଶରେ ଲୋକ ସଂଖ୍ୟା ବଢ଼ିଲା । ବେଶୀ ବେଶୀ ଖାଦ୍ୟ ରନ୍ଧା ହେଲା । ବେଶୀ ବେଶୀ କାଠ ଜଳାଗଲା । ଜଙ୍ଗଲ ପାଖରେ ରହୁଥିବା ଲୋକମାନେ ଅନବରତ କାଠ କାଟିଲେ । ଦୂର ଲୋକମାନଙ୍କୁ କାଠ ବିକ୍ରୀ କରି ପଇସା ପାଇଲେ । କ୍ରମେ ଜଙ୍ଗଲ ସବୁ ଲୋପ ହେବାକୁ ଲାଗିଲା । ଏହିପରି ଭାବରେ କାଠ କାଟିଲେ, ଅଳ୍ପଦିନ ଭିତରେ କାଠ ମିଳିବ ନାହିଁ ।

ଦିନକୁଦିନ ଜଙ୍ଗଲ କ୍ଷୟ ହେଉଛି । ଗୋବରକୁ ଆମ୍ଭେମାନେ ଜମିରେ ସାର ରୂପେ ବ୍ୟବହାର କରୁଛୁ । ଜାଳପାଇଁ ଆମ୍ଭେମାନେ ଗଛ ହାଣୁଛୁ । ଜଙ୍ଗଲ ନଷ୍ଟ ହେଉଛି ।

ଏହାର ପରିଣାମ ଅତି ଭୟଙ୍କର । ଗଛଗୁଡ଼ିକ ଆମର ଭୂମିକୁ ରକ୍ଷା କରନ୍ତି । ପାଣିକୁ ମାଟିତଳେ ସଞ୍ଚୟ କରନ୍ତି । ଗଛ ଯୋଗୁ ମାଟିତଳେ ପାଣିଥାଏ । କୂଅ ଖୋଳିଲେ ପାଣି ବାହାରେ । ଗଛ ନଥିଲେ ସବୁପାଣି ସମୁଦ୍ରକୁ ନିଗିଡ଼ି ଯାଆନ୍ତା ।

ମାଟି ଆମର ମା । ମାଟିରୁ ଆମେ ଫସଲ ଆମଦାନୀ କରୁ । କିନ୍ତୁ ଏଇ ମାଟି ଗଛଦ୍ୱାରା ରକ୍ଷା ହୁଏ । ଗଛର ଚେର ମାଟିକୁ କାମୁଡ଼ି ଧରେ । ତେଣୁ ବର୍ଷା ହେଲେ ମାଟି ଧୋଇ ହୋଇଯାଏ ନାହିଁ । ଏହାକୁ ମୃତ୍ତିକା ସଂରକ୍ଷଣ କହନ୍ତି । ଏହା ଗଛ ଦ୍ୱାରାହିଁ ସମ୍ଭବ ହୁଏ ।

ତେଣୁ ଗଛର ଉପକାର କେତେ ସମସ୍ତେ ବୁଝିବା ଉଚିତ । ଜଙ୍ଗଲକୁ ରକ୍ଷା କରିବା ଉଚିତ । ନୂଆ ଜଙ୍ଗଲ ସୃଷ୍ଟି କରିବା ଉଚିତ ।

# ଆମ ଜୀବନ ଗଛରେ ଥାଏ

ଗଛ ଆମର କି ଉପକାର କରେ ସମସ୍ତେ ଜାଣନ୍ତି । କିନ୍ତୁ ଅସଲ କଥା ଅନେକେ ଜାଣନ୍ତି ନାହିଁ । ଗଛ ଆମକୁ ଜୀବନ ଦେଉଛି । ଆହାର ଯୋଗାଉଛି । ସେଇ ଅଜଣା କଥା ଏବେ ଶୁଣ ।

ଆମ୍ଭେମାନେ ପୃଥିବୀର ସ୍ଥଳଭାଗରେ ବାସ କରୁଛୁ । ଆଉ କେତେକ ପ୍ରାଣୀ ଜଳ ଭାଗରେ ବାସ କରନ୍ତି । ଏ ସମସ୍ତ ପ୍ରାଣୀ ଗଛ ପାଇଁ ବଞ୍ଚିଛନ୍ତି । ସ୍ଥଳ ଭାଗରେ ଯିମିତି ଉଦ୍ଭିଦ ଅଛି, ଜଳ ଭାଗରେ ମଧ୍ୟ ଉଦ୍ଭିଦ ରହିଛି ।

ଗଛ ଯେତେବେଳେ ବଢ଼େ, ନିଜ ଦେହରୁ ଅକ୍ସିଜେନ ବା ଅମ୍ଳଜାନ ବାଷ୍ପ ଛାଡ଼େ । ସେଇ ଅମ୍ଳଜାନ ମଣିଷ ନିଜ ନିଶ୍ୱାସରେ ଗ୍ରହଣ କରି ବଞ୍ଚେ ।

ସମସ୍ତେ ଡାକ୍ତରଖାନା ଦେଖିଛ । ମୃତ୍ୟୁମୁଖୀ ରୋଗୀକୁ ବଞ୍ଚାଇବା ପାଇଁ ଅମ୍ଳଜାନ ( ଅକ୍ସିଜେନ ) ଦିଆଯାଏ । ଅମ୍ଳଜାନ ଅଭାବରେ ଆମ୍ଭେମାନେ କ୍ଷଣମାତ୍ର ବଞ୍ଚି ପାରିବା ନାହିଁ । ଏହି ଅମ୍ଳଜାନ ଆମ୍ଭେମାନେ ଗଛରୁ ଲାଭ କରୁ ।

ଖାଲି ସେତିକି ନୁହେଁ, ମଣିଷ ନିଜ ଦେହରୁ ବିଷାକ୍ତ ପବନ ନିଃଶ୍ୱାସରେ କାଢ଼ିପକାଏ । ଏହି ପବନରେ ଅଙ୍ଗାରକାମ୍ଳ ଥାଏ । ଏହି ବିଷକୁ ଗଛ ଶୋଷି ନିଏ । ଗଛ ବଢ଼ିବା ପାଇଁ ଅଙ୍ଗାରକାମ୍ଳ ବାୟୁ ଦରକାର ।




ଗଛକୁ ଭଗବାନ୍ କାହିଁକି ସୃଷ୍ଟି କରିଅଛନ୍ତି ? ତାହା ଏବେ ସମସ୍ତେ ବୁଝ । ଗଛ ନଥିଲେ ମନୁଷ୍ୟ ନିଃଶ୍ୱାସରେ ଛାଡୁଥିବା ଅଙ୍ଗାରକାମ୍ଳ ବାଷ୍ପରେ ବାୟୁମଣ୍ଡଳ ପୂରିଯାଆନ୍ତା । ଆମେ ସେଇ ବିଷାକ୍ତ ପବନ ପୁଣି ପ୍ରଶ୍ୱାସରେ ଗ୍ରହଣ କରି ରୋଗରେ ପଡ଼ନ୍ତୁ ।

ଡାକ୍ତରମାନେ ମୁହଁ ଘୋଡ଼ାଇ ଶୋଇବାକୁ ମନାକରି ଅଛନ୍ତି । କାରଣ ଆମ୍ଭେମାନେ ଯେଉଁ ଦୂଷିତ ବାୟୁ

ଛାଡ଼ୁଛୁ, ତାହା ପୁଣି ଗ୍ରହଣ କରିବୁ । ରୋଗଗ୍ରସ୍ତ ହେବୁ । ଏହି ଦୂଷିତ ବାୟୁ ଅଙ୍ଗାରକାମ୍ଳକୁ ଗଛ ଗ୍ରହଣ କରେ । ଆମ୍ଭମାନଙ୍କୁ ରୋଗ ମୁକ୍ତ କରେ । ଛବିଟିକୁ ଲକ୍ଷ୍ୟ କର । ଗଛ କିପରି ଆମ୍ଭମାନଙ୍କର ଜୀବନ ବଞ୍ଚାଇଛି ତାହା ଜାଣ ।

---

## ଆମ ଖାଦ୍ୟ ଗଛରେ ଥାଏ

ପୃଥିବୀରେ ବହୁତ ପ୍ରକାର ଜୀବଜନ୍ତୁ ବାସ କରନ୍ତି । ମଣିଷର ବୁଦ୍ଧି ଥିବାରୁ ସେ ଏମାନଙ୍କ ମଧ୍ୟରେ ବଡ଼ । ସବୁ ଜୀବଜନ୍ତୁଙ୍କ ମଧ୍ୟରେ ଶ୍ରେଷ୍ଠ । ଏହି ଜୀବଜନ୍ତୁମାନେ ଖାଦ୍ୟ ଖାଇ ବଞ୍ଚନ୍ତି । ଖାଦ୍ୟ ନ ପାଇଲେ ସମସ୍ତେ ମରିଯିବେ । ଦେଶରେ ଦୁର୍ଭିକ୍ଷ ପଡ଼ିଲେ ଲୋକମାନେ ମରିଯାନ୍ତି । କାରଣ ସେମାନେ ଖାଦ୍ୟ ପାଆନ୍ତି ନାହିଁ । ଖାଦ୍ୟ ଆମ୍ଭମାନଙ୍କୁ ବଳଦିଏ ଓ ବଞ୍ଚାଇ ରଖେ ।

ଏହି ଜୀବଜନ୍ତୁ ମାନଙ୍କର ପାଟି, ଆଖି, କାନ ଇତ୍ୟାଦି ଅବୟବ ଅଛି । କିନ୍ତୁ ଗଛର ନାହିଁ । ଗଛର ଚେର, ପତ୍ର, ଫୁଲ, ଫଳ ଇତ୍ୟାଦି ଅଛି ।

ଜୀବଜନ୍ତୁମାନେ ଚ଼ଲବୁଲ କରନ୍ତି । ମାତ୍ର ଗଛ ସ୍ଥିର ହୋଇ ରହିଥାଏ ।

କିନ୍ତୁ ଆଶ୍ଚର୍ଯ୍ୟ କଥା ଜୀବଜନ୍ତୁ ମାନେ ଖାଦ୍ୟ ଉତ୍ପନ୍ନ କରନ୍ତି ନାହିଁ । ସେମାନେ ଖାଦ୍ୟ ପାଇଁ ଗଛ ବା ଉଦ୍ଭିଦ ଉପରେ ନିର୍ଭର କରନ୍ତି । ଗଛ ନଥିଲେ ଜୀବ ରହିବେ ନାହିଁ ।

ଅଥଚ ଉଦ୍ଭିଦ ନିଜେ ନିଜର ଖାଦ୍ୟ ଉତ୍ପନ୍ନ କରେ । ଉଦ୍ଭିଦ ପ୍ରସ୍ତୁତ କରୁଥିବା ବଳକା ଖାଦ୍ୟକୁ ଜୀବଜନ୍ତୁ ଓ ମନୁଷ୍ୟମାନେ ଖାଇବଞ୍ଚନ୍ତି ।

ଆମ୍ଭମାନଙ୍କ ଘରେ ଯେଉଁ ଖାଦ୍ୟ ରନ୍ଧା ହେଉଛି ତାହା ଉଦ୍ଭିଦରୁ ଆସିଛି । ତେବେ କ୍ଷୀର କିପରି ଉଦ୍ଭିଦଠାରୁ ଆସିଲା ? ଆମ୍ଭେମାନେ ସମସ୍ତେ ଦୁଧ ପିଇବାକୁ ଭଲପାଉ । ଶିଶୁ ଓ ରୋଗୀ ପାଇଁ ଏହା ଏକମାତ୍ର ଖାଦ୍ୟ ଏହି କ୍ଷୀର ସିଧା ଉଦ୍ଭିଦଠାରୁ ମିଳେ ନାହିଁ । କିନ୍ତୁ କ୍ଷୀର, ଉଦ୍ଭିଦରୁହିଁ ସୃଷ୍ଟି । ତାହା କିପରି ?

ଆମ୍ଭେମାନେ ସାଧାରଣତଃ ଗାଈ ମହିଷି ଛେଳି ଇତ୍ୟାଦି ପଶୁଙ୍କଠାରୁ ଦୁଧ ପାଇଥାଉ । ଏହି ଗାଈ ଛେଳି ମହିଷିମାନେ ଘାସ, ଡାଳପତ୍ର ଖାଇ କ୍ଷୀର ଦିଅନ୍ତି । ଯେଉଁଠି ବୃକ୍ଷ, ଲତା ଓ ଘାସ ଇତ୍ୟାଦି ନାହିଁ, ସେଠାରେ ଜୀବଜନ୍ତୁ ବଞ୍ଚି ପାରିବେ ନାହିଁ । କ୍ଷୀର ଦେବେ କୁଆଡ଼ୁ ?

ଗଛଲତା ଇତ୍ୟାଦି ଉଦ୍ଭିଦମାନେ ଆମ୍ଭଙ୍କୁ ଖାଦ୍ୟ ଯୋଗାଉଛନ୍ତି । ଧାନ, ଗହମ, ମକା ଓ ତୈଳବୀଜ ଏସବୁ ଉଦ୍ଭିଦରୁ ଉତ୍ପନ୍ନ ହୁଏ । ଆମ ପିନ୍ଧିଥିବା ଲୁଗା କପା ଗଛରୁ ଉତ୍ପନ୍ନ ହୁଏ ।




ଉଦ୍ଭିଦ ଆମ୍ଭଙ୍କୁ ଖାଦ୍ୟ ଯୋଗାଏ, ଏକଥା ସତ । ଉଦ୍ଭିଦ ଏହି ଖାଦ୍ୟ ଫଳ, ମୂଳ, ପତ୍ର ଓ କାଣ୍ଡରେ ସାଇତି ରଖେ । ପ୍ରାଣୀମାନେ ନିଜେ ଖାଦ୍ୟ ପ୍ରସ୍ତୁତ କରିପାରନ୍ତି ନାହିଁ । ଉଦ୍ଭିଦର ଏଇ ସାଇତା ଖାଦ୍ୟକୁ ପ୍ରାଣୀମାନେ ଗ୍ରହଣ କରନ୍ତି । ଖାଦ୍ୟର ପ୍ରଥମ ପ୍ରସ୍ତୁତି ଉଦ୍ଭିଦ ଦ୍ୱାରା ହୋଇଥାଏ । ଏହି ଖାଦ୍ୟ ଆମ୍ଭମାନଙ୍କର ମୌଳିକ ଖାଦ୍ୟ । ତା ପରେ ବିଭିନ୍ନ ଉପାୟରେ ତାହା ରନ୍ଧା ହୋଇ ସୁସ୍ୱାଦୁ ହୁଏ ।

ଗଛ ନଥିଲେ, ଆମକୁ ଖାଦ୍ୟ କିଏ ଦିଅନ୍ତା ? କ୍ଷୀର କିଏ ଦିଅନ୍ତା ? ଗଛ ଅଭାବରେ ଆମ୍ଭେମାନେ ଦିନେ ବି ବଞ୍ଚି ପାରନ୍ତୁ ନାହିଁ ।

---

# ଗଛ କିପରି ଖାଦ୍ୟ ପ୍ରସ୍ତୁତ କରେ

ଗୋଟିଏ ଗଛକୁ ଲକ୍ଷ୍ୟ କର । ଏହା ପାଞ୍ଚ ଭାଗରେ ବିଭକ୍ତ । ଚେର, କାଣ୍ଡ, ପତ୍ର, ଫୁଲ ଓ ଫଳ । ଗୋଟିଏ ଗଛ ଛୋଟରୁ ବଡ଼ ହୁଏ । ଡାଳ ପତ୍ର ବଢ଼େ । ଫୁଲ ଧରେ ତାପରେ ଫଳ ହୁଏ । ଯାହା ଜୀବଜନ୍ତୁ ମାନେ ଖାଇ ବଞ୍ଚନ୍ତି ।

ଗଛର ମୂଳ ହେଲା ଚେର । ଏହା ମାଟି ତଳେ ଥାଏ । ଏଇ ଚେର ମାଟିରୁ ଜଳ ଓ ଲବଣ ଅଂଶ ନେଇ ଗଛକୁ ପଠାଏ । ମାଟି ସହିତ କାମୁଡ଼ି ଧରେ ।

ମାଟି ଉପରେ କାଣ୍ଡ ଗଛକୁ ସଳଖ କରି ରଖେ । ଚେର ପଠାଉଥିବା ଜଳ ଓ ଲବଣ ଅଂଶକୁ, ପତ୍ରକୁ ପଠାଏ । ପତ୍ର ଏହି ଜଳ ଓ ଲବଣ ପାଇ ଖାଦ୍ୟ ତିଆରି କରେ । ତାହାକୁ ସୂର୍ଯ୍ୟ କିରଣ ସାହାଯ୍ୟ କରେ । ଅଙ୍ଗାରକାମ୍ଳ କିପରି ଗଛ ବଢ଼ିବାକୁ ଦରକାର, ଆଗରୁ ଜାଣିଛ । ପତ୍ରରେ ଖାଦ୍ୟ ପ୍ରସ୍ତୁତ ସଦା ସର୍ବଦା ହେଉଛି ।

ପତ୍ର ହେଲା ଗଛର ରୋଷାଇ ଘର । ପତ୍ର ଗୁଡ଼ିକ ଛିଣ୍ଡାଇ ଦେଲେ ଗଛ ଆଉ ଖାଦ୍ୟ ତିଆରି କରିପାରେ ନାହିଁ ।

ଏଥିରୁ ଜଣାଯାଏ, ଚେର କାଣ୍ଡ ଓ ପତ୍ର ସମସ୍ତେ ଖାଦ୍ୟ ପ୍ରସ୍ତୁତ କରନ୍ତି ।

ଶେଷରେ ଗଛରେ ଫୁଲ ଧରେ । ତା'ପରେ ଫଳ । ଫଳ ପାଚିଲେ ଜୀବଜନ୍ତୁ ମାନେ ଆହାର କରନ୍ତି । ଧାନ ପାଚିଲେ, ଆମ୍ଭେମାନେ ଚାଉଳ ପାଉଁ ।

| | |
|---|---|
| ପତ୍ରରେ :- | |
| କାଣ୍ଡରେ :- | |
| ଚେରରେ :- | |
| ଫଳରେ :- | |

ପତ୍ରରେ ଯେଉଁ ଖାଦ୍ୟ ପ୍ରସ୍ତୁତ ହେଉଛି ତାହା ଗଛ ନିଜେ ଖାଏ । ବଳକା ଖାଦ୍ୟ ଜୀବଜନ୍ତୁ ମାନେ ଖାଆନ୍ତି । ଏହି ଗଛ ନିଜ ଦେହର ବିଭିନ୍ନ ସ୍ଥାନରେ ଖାଦ୍ୟ ସଞ୍ଚୟ କରିଥାଏ । ଯାହା ଆମ୍ଭେମାନେ ଖାଉଁ ଏଥିରୁ କେତୋଟି ନମୁନା ତଳେ ଦିଆଗଲା ।

ପତ୍ରରେ — ପାଳଙ୍ଗ, ସଜନାଶାଗ, ବନ୍ଧାକୋବି
କାଣ୍ଡରେ — ଆଳୁ, ଆଖୁ, ଅଦା, ପିଆଜ ।
ଚେରରେ — କନ୍ଦମୂଳ, ଗାଜର, ମୂଳା ।
ଫଳରେ — ନଡ଼ିଆ, ଆମ୍ବ, ପଣସ, ବାଇଗଣ ।

ତାହାହେଲେ ଗଛ ବା ଉଦ୍ଭିଦଠାରୁ ଖାଦ୍ୟ ପାଇ ଜୀବ ଜଗତ ବଞ୍ଚି ରହିଛି । ଏହାର ପ୍ରମାଣ ଅନେକ ବହୁତ ଅଛି । ଏ ବିଷୟରେ ବହୁତ ବଡ଼ ବଡ଼ ବହି ଲେଖା ହୋଇ ସ୍କୁଲ, କଲେଜରେ ପଢ଼ା ହେଉଛି ।

ଏଥର ଆମ୍ଭେ ସମସ୍ତେ ଗଛର ଗୋପନ ରହସ୍ୟ ଜାଣିଲେ । ଉଦ୍ଭିଦ ନଥିଲେ ଜୀବଜନ୍ତୁ ମାନେ ଖାଦ୍ୟ ପାଆନ୍ତେ ନାହିଁ । ଅମ୍ଳଜାନ ପାଇ ପାରନ୍ତେ ନାହିଁକି ନିମିଷ ମାତ୍ର ବଞ୍ଚି ପାରନ୍ତେ ନାହିଁ ।

## ଗଛରୁ ଔଷଧ ମିଳେ

ଏବେ ଡାକ୍ତର ଖାନାରେ ରୋଗ ପାଇଁ ବଟିକା ମିଳୁଛି । ସେଗୁଡ଼ିକ ମୂଲ୍ୟ ବେଶୀ । ଆମ ବାଡ଼ି ବଗିଚାରେ

ବହୁତ ଗଛ ଅଛି । ସେଥିରୁ ମଧ୍ୟ ଔଷଧ ମିଳେ । ଆମ ପୂର୍ବ ପୁରୁଷଗଣ ଡାକ୍ତରଖାନା ଦେଖି ନଥିଲେ । ସେମାନେ ପତ୍ରର ରସ, ଫଳ, ମୂଳ ଇତ୍ୟାଦିକୁ ଔଷଧ କରୁଥିଲେ । ଆମ ଦେଶରେ କବିରାଜୀ ଚିକିତ୍ସା ବହୁ ପୁରାତନ । ସେମାନେ ଯେଉଁ ଔଷଧ କରନ୍ତି ଏସବୁ ଗଛପତ୍ରରୁ ଆସିଥାଏ ।

ରୋଗ କାହାକୁ ନହୁଏ । କିନ୍ତୁ ସବୁ ଯାଗାରେ ଡାକ୍ତର ମିଳନ୍ତି ନାହିଁ । ଗାଁ ଗଣ୍ଡାରେ ଡାକ୍ତର ନାହାନ୍ତି । ଲୋକମାନେ ଏହି ଗଛ ପତ୍ରରୁ ଔଷଧି ସଂଗ୍ରହ କରିଥାନ୍ତି । ପ୍ରାୟ ସମସ୍ତଙ୍କ ଘରେ ଏମିତି ଗଛ ଲଗା ହୋଇଥାଏ ।

ତୁଳସୀ ପତ୍ରରେ ବିଷ୍ଣୁଙ୍କୁ ପୂଜା କରୁ । ବେଲପତ୍ରରେ ମହାଦେବଙ୍କୁ ପୂଜା କରୁ । ଏହା ଯୁଗ ଯୁଗରୁ ଚାଲିଆସିଛି । ତୁଳସୀପତ୍ର ଓ ବେଲପତ୍ର ଠାକୁରଙ୍କ ଧନ୍ତା । ଆମ୍ଭେମାନେ ନିର୍ମାଲ୍ୟରେ ତାହା ଖାଉଁ ।

କିନ୍ତୁ ଏହି ତୁଳସୀ ପତ୍ର ବା ବେଲ ପତ୍ରରେ ବହୁତ ଔଷଧିଗୁଣ ଅଛି ।

ତୁଳସୀ—ହିନ୍ଦୁମାନେ ଏହାକୁ ଚଉରାରେ ରଖି ପୂଜା କରନ୍ତି । ସନ୍ଧ୍ୟା ହେଲେ ଏହା ମୂଳରେ ଦୀପ ଦିଅନ୍ତି । ପ୍ରତିଦିନ ସକାଳୁ ଜଳ ସହିତ ପାଞ୍ଚୋଟି ତୁଳସୀପତ୍ର ଚୋବାଇବାକୁ କବିରାଜ କହିଥାନ୍ତି । ଏପରି କଲେ ଜ୍ୱର ବା ସର୍ଦ୍ଦି ହେବ ନାହିଁ ।

ତୁଳସୀପତ୍ର ରସରେ ମହୁ ମିଶାଇ ଶିଶୁକୁ ଦେଲେ ସର୍ଦ୍ଦି ଓ କାଶ ଭଲ ହୁଏ । ଏଛଡ଼ା ଅନେକ ରୋଗ ପାଇଁ ଏହା ଗୋଟିଏ ମହୌଷଧି । ସେଥିପାଇଁ ଏହା ଘରେ ଘରେ ପୂଜା ପାଏ ।



ବେଲ :–ଶିବଙ୍କୁ ବେଲ ପତ୍ରରେ ପୂଜା କରାଯାଏ । ଆମ୍ଭେମାନେ ବେଲପତ୍ର ଓ ପାଚୁଲ ଖାଉଁ । ଏହା ଦେହ ପ୍ରତି ବହୁତ ଉପକାରୀ ଅଟେ ।

ବେଲପତ୍ର ଖାଇଲେ ଅଜୀର୍ଣ୍ଣ ଓ ପେଟ ଫମ୍ପା ଭଲ ହୋଇଯାଏ । ଖାଦ୍ୟ ହଜମ ହୁଏ । କ୍ଷୁଧା ବୃଦ୍ଧି ହୁଏ ।

ବେଲପତ୍ର ପର ବେଲ ମଧ୍ୟ ଉପକାରୀ । କଞ୍ଚା ବେଲ ପୋଡ଼ିକରି ମିଶ୍ରି ଗୁଣ୍ଡ ଦେଇ ଖାଇଲେ ଗ୍ରହଣୀ ଓ ନାଲରକ୍ତ

ଝାଡ଼ାବନ୍ଦ ହୁଏ । ଖରାଦିନେ ପାଚିଲା ବେଲ ପଣାର ଗୁଣ ତ ସମସ୍ତେ ଜାଣନ୍ତି । ଅଳ୍ପ ପଇସାରେ ଭଲ ପାନୀୟ ମିଳିଥାଏ ।

ନିମ୍ବ—ନିମ୍ବପତ୍ର ପିତା । ତଥାପି ଲୋକମାନେ ନିମ୍ବ କଢ଼କୁ ଭାଜି ଖାଆନ୍ତି । ଏଥିରେ ଔଷଧି ଗୁଣ ଭରି ରହିଛି । ଚର୍ମରୋଗ ଆଦୌ ହୁଏ ନାହିଁ ।

ନିମ୍ବ ଛେଲି ଓ ପତ୍ରକୁ ପାଣିରେ ସିଝାଇବ । ସେଇ ପାଣିରେ ଘା ଧୋଇଲେ, ଘା ଭଲ ହୋଇଯିବ ।

ଅସାଧ୍ୟ ଚର୍ମରୋଗ ନିମ୍ବତେଲରେ ଭଲ ହୋଇଯାଏ । କବିରାଜଙ୍କ ପରାମର୍ଶରେ ଏ ସବୁ ବ୍ୟବହାର କରାଯାଏ ।

ଏହିପରି ଭାବରେ ବହୁତ ଗଛ ଲତା ଆମ ବାଡ଼ି ଘରେ ଦେଖିବାକୁ ମିଳେ । ଆୟୁର୍ବେଦ ଚିକିତ୍ସାରେ ଏସବୁ ଅତ୍ୟନ୍ତ ପ୍ରୟୋଜନ । ଗାଁ ଗହଳରେ ଏହିପରି ବହୁତ ଟୁଟକା ଔଷଧ ବହୁ ଯୁଗରୁ ପ୍ରଚଳିତ ଅଛି । ଲୋକମାନେ ସୁସ୍ଥ ଓ ସବଳ ଅଛନ୍ତି । ବିନାଖର୍ଚ୍ଚରେ ସବୁପ୍ରକାର ଔଷଧ ଗଛ ପତ୍ରରୁ ପାଉଛନ୍ତି ।

ହରଡ଼ା, ବାହାଡ଼ା, ଅଁଳା, ଡାଳିମ୍ବ, ଲେମ୍ବୁ ଇତ୍ୟାଦି ଗଛରୁ ବହୁ ଔଷଧ ମିଳିଥାଏ । ଏଣୁ ଅଧିକେ ସମସ୍ତେ ଏକଥା ଜାଣନ୍ତି ।

ତେଣୁ ଗଛ ଆମକୁ ଖାଦ୍ୟ ଯୋଗାଏ । ପ୍ରଶ୍ୱାସରେ 'ଅକ୍‌ସିଜେନ' ବା ଅମ୍ଳଜାନ ଯୋଗାଏ । ଯେଉଁ ବାୟୁଯୋଗୁଁ ଆମର ପ୍ରାଣ ବଞ୍ଚେ । ତାହାଛଡ଼ା ରୋଗ ହେଲେ, ଏହି ଗଛ ପତ୍ରରୁ ଔଷଧ ମଧ୍ୟ ସଂଗ୍ରହ କରାଯାଏ । ତେଣୁ ଗଛହିଁ ମଣିଷର ପରମ ମିତ୍ର ।



ରାମାୟଣରେ ଲକ୍ଷ୍ମଣଶକ୍ତିଭେଦ କଥା ସମସ୍ତେ ପଢ଼ିଥିବ । ଯୁଦ୍ଧକ୍ଷେତ୍ରରେ ମୃତ ଲକ୍ଷ୍ମଣ 'ବିଶଲ୍ୟକରଣୀ' ବୃକ୍ଷଦ୍ୱାରା ବଞ୍ଚିଥିଲେ । ହନୁମାନ ଗଛଟିକୁ ଚିହ୍ନିନପାରି ସମୁଦାୟ ଗନ୍ଧମାର୍ଦ୍ଦନ ପାହାଡ଼ଟିକୁ ମୁଣ୍ଡରେ ବୋହି ନେଇଥିଲେ ।

# ଜଙ୍ଗଲର ଆକର୍ଷଣ

ବୃକ୍ଷ ଆମ୍ଭମାନଙ୍କର ଜୀବନରକ୍ଷା କରିଛି । ଆମକୁ ଖାଦ୍ୟ ଯୋଗାଇଛି । ଅମ୍ଳଜାନ ବାଷ୍ପ ଦେଇଛି । ଦେହକୁ ବଳ ଦେଇଛି । ଘର କରିବା ପାଇଁ କାଠ ଦେଇଛି ।

ତଥାପି ମଣିଷ ଆହୁରି ସୁଖ ଚାହେଁ । ସବୁ ପ୍ରାଣୀଙ୍କ ମଧ୍ୟରେ ମନୁଷ୍ୟ ଶ୍ରେଷ୍ଠ ପ୍ରାଣୀ । କାରଣ ଭଗବାନ ମଣିଷକୁ ଦେହ ସହିତ 'ମନ' ଦେଇଛନ୍ତି । ଏଇ ମନ ଗୋଟିଏ ଅଦ୍ଭୁତ ଜିନିଷ । କ୍ଷଣକ ଭିତରେ ମନ ପୃଥିବୀ ବୁଲିଆସେ ।

ମନରେ ବହୁତ ଭାବନା ହୁଏ । ମନୁଷ୍ୟ ନାନା ପ୍ରକାର ଆଶା ମନରେ କରେ । ଭବିଷ୍ୟତ ଚିନ୍ତା ଏଇ ମନ ମଧ୍ୟରେ କରେ । ମନୁଷ୍ୟ ତାର ସମସ୍ତ ଅନୁଭୂତି ମନେ ଧରି ରଖେ । ତେଣୁ ମନୁଷ୍ୟ ଏ ଜଗତର ଶ୍ରେଷ୍ଠ ଜୀବ ।

ତେବେ ଏଇ ମନକୁ କିପରି ସତେଜ ରଖିବା ? ମନ ଭଲ ନ ରହିଲେ ଦେହ ଆଦୌ ଭଲ ରହିବ ନାହିଁ । ମନ ଭଲ ଥିଲେ ରୋଗ ଦୂରେଇ ଯିବ । ମନ ଭଲ ରହିବାକୁ ଭଗବାନ ଅନେକ ସୁନ୍ଦର ବସ୍ତୁ ସୃଷ୍ଟି କରିଛନ୍ତି । ମନରେ ଦୁଃଖ ଜାତ ହେଲେ, ଆମ୍ଭେମାନେ ସେଇ ସୁନ୍ଦର ଦୃଶ୍ୟ ଦେଖିବାକୁ ଯାଉଁ । ତାହା ହେଲା ପ୍ରାକୃତିକ ସୌନ୍ଦର୍ଯ୍ୟ ।

ଆମ ଭିତରେ ଅନେକ ଲୋକ ସହରରେ ବି ଥାନ୍ତି । ସେଠାରେ କଲକାରଖାନା ରହିଛି । ପୋଡ଼ା କୋଇଲା ବା ତେଲର ଗନ୍ଧ, ଧୂଆଁ, ଧୂଳି ସହରକୁ ଅସ୍ୱାସ୍ଥ୍ୟକର କରୁଛି । ସେଥିରେ ପୁଣି ଯାନ ବାହାନ ଲୋକ ଗହଳି, ଠେଲାପେଲା । ମନୁଷ୍ୟର ମନ କ୍ଲାନ୍ତ ହୋଇପଡ଼େ ।

ମଣିଷ ସବୁବେଳେ ଚାହେଁ ତାର କର୍ମକ୍ଷେତ୍ରରୁ କିଛି ସମୟ ପାଇଁ ମୁକ୍ତି । ସେଥିପାଇଁ ଭଗବାନ ଅନନ୍ତ ସୌନ୍ଦର୍ଯ୍ୟ ଆମ ଘରପାଖରେ ସୃଷ୍ଟିକରି ରଖିଅଛନ୍ତି । ଆମ୍ଭେମାନେ ତାହା ଉପଭୋଗ କରିବା ଉଚିତ ।



( ବଣଭୋଜି )

ଆମ ଘର ପାଖରେ ବଣ, ପାହାଡ଼, ନଦୀ, ସମୁଦ୍ର, ହ୍ରଦ ଆଦି ଅଛି । ଏଗୁଡ଼ିକ ପ୍ରାକୃତିକ ସୌନ୍ଦର୍ଯ୍ୟ ।

ଘରଠାରୁ ଦୂରକୁ ଯାଇ ବଣଭୋଜୀ କରିବାକୁ ଆମକୁ ଭଲ ଲାଗେ । ଛୁଟୀ ହେଲେ ବଣ ପାହାଡ଼ରେ ଥିବା ସ୍ୱାସ୍ଥ୍ୟ-କର ସ୍ଥାନକୁ ଯିବାକୁ ଭଲ ଲାଗେ । ଏହାଦ୍ୱାରା ମନ ସତେଜ ରହେ । ଘର ଛାଡ଼ି ବାହାରେ ବୁଲି ଆସିଲେ ମନ ପରିବର୍ତ୍ତନ ହୁଏ । ଭଗ୍ନ ସ୍ୱାସ୍ଥ୍ୟ ଫେରି ଆସେ ।

ତେବେ ମଣିଷ ଏହି ବଣକୁ କାହିଁକି ଏତେ ଭଲପାଏ ? ଟିକେ ଛୁଟି ମିଳିଲେ ବଣ ଭିତରକୁ ଯିବାକୁ ଭଲ ଲାଗେ ? ତୋଟା ବା ବଗିଚାରେ ବସିବାକୁ ଭଲ ଲାଗେ । କାହିଁକି ?

କାରଣ, ଏଇଭଳି ସ୍ଥାନମାନଙ୍କରେ ମନୁଷ୍ୟ ଜାତି ପ୍ରଥମେ ବାସ କରୁଥିଲା । ଆଜିକୁ ହଜାର ହଜାର ବର୍ଷ ପୂର୍ବେ ମନୁଷ୍ୟ ଚାଷ ଜାଣି ନଥିଲା । ବଣରେ ବୁଲି ଫଳ ମୂଳ ଖାଇ ବଞ୍ଚି ଥିଲା । ସେମାନଙ୍କୁ ପୁରାତନ ପ୍ରସ୍ତର ଯୁଗର ମଣିଷ ବୋଲି କୁହାଯାଏ । ଏବେ ବି ଆମ ଦେଶରେ ବହୁତ ଲୋକ ବଣ ପାହାଡ଼ରେ ବାସ କରନ୍ତି । ସେମାନେ ଆଦିବାସୀ ।

ଆମର ପୂର୍ବ ପୁରୁଷଗଣ ବଣ ମଣିଷ ଥିଲେ । ସେମାନେ ପର୍ବତ ଗୁହାରେ କିମ୍ବା ଗଛ ଉପରେ ଶୋଉଥିଲେ । ସେଇ ରକ୍ତ ଆମ ଦେହରେ ଥିବାରୁ ଆମେ ବଣ ଜଙ୍ଗଲ ପ୍ରତି ଏବେବି ମଣିଷ ଶ୍ରଦ୍ଧା କରୁଛି । ଯେତେବେଳେ ଆମେ କୌଣସି ଜଙ୍ଗଲକୁ ବୁଲିଯାଉ, ତାହା ଆମକୁ ନିଜଘର ପରି

ଲାଗେ । ସତେ ଯିମିତ ଆମେ ସ୍ୱଚ୍ଛ ଗ୍ରା ବାୟୁସ୍ଥଳୀକୁ ଫେରି ଆସିଛୁ । ତେଣୁ ବଣକୁ ବୁଲିଗଲେ ମନ ସତେଜ ହୁଏ । କାମ କରିବାକୁ ଉତ୍ସାହ ଆସେ ।

---

## ମନୁଷ୍ୟର ବନ୍ୟ ପ୍ରକୃତି

ମଣିଷ ପ୍ରଥମେ ବଣ ଜଙ୍ଗଲରେ ରହୁଥିଲା । ଚାରିଆଡ଼େ ବିପଦ ଥିଲା । ମଣିଷ ଯେତେ ସତର୍କ ଥିଲେ ବି ହିଂସ୍ରଜନ୍ତୁଙ୍କୁ ଭୟ କରୁଥିଲା । ଆଜି ବି ଆମ ମନରେ କେତେକ ଜନ୍ମଗତ ଭୟ ଅଛି । ପ୍ରାଚୀନ ମଣିଷ ଅନ୍ଧାରକୁ ଭୟ କରୁଥିଲା । ସେତେବେଳେ ବିଜୁଳିବତୀ ନଥିଲା । ଲୋକମାନେ ଡିଆସିଲି କଣ ଜାଣି ନଥିଲେ । ଚାରିଆଡ଼େ କିଟି କିଟି ଅନ୍ଧାର । ରାତି ହେଲେ ଭୟଙ୍କର ଜୀବଜନ୍ତୁମାନେ ପଦାକୁ ବାହାରୁ ଥିଲେ । ମଣିଷ ଭୟରେ ଗଛ ଉପରେ ଶୋଉଥିଲା । ତେଣୁ ଆଜି ମଧ୍ୟ ଆମ୍ଭେମାନେ ଅନ୍ଧାରକୁ ଭୟ କରୁଛୁ ।

ପୂର୍ବେ ଆଦିମ ମାନବ ନିଜକୁ ରକ୍ଷା କରିବାକୁ କୁକୁର ପୋଷିଥିଲା । ଆଜି ମଧ୍ୟ ଆମ୍ଭେମାନେ କୁକୁରକୁ ଗୃହ-ପାଳିତ ପଶୁ କରିଛୁ ।

ଆମର ପୂର୍ବପୁରୁଷଗଣ ଅରଣ୍ୟବାସୀ ଥିଲେ । ବନ୍ୟ ଜନ୍ତୁଙ୍କ ଠାରୁ ରକ୍ଷା ପାଇବା ପାଇଁ କାଠନିଆଁ ଜାଳି ତା' ଚାରିପାଖରେ ବସୁଥିଲେ । ଠିକ୍ ସେହିପରି ଆଜିମଧ୍ୟ ପରି-ବାରର ଲୋକେ ଚୂଲିକୁ ଘେରି ବସିଯାନ୍ତି । ଦେହକୁ ଉଷ୍ମ କରନ୍ତି । ମନକୁ ବିପଦ ମୁକ୍ତ କରନ୍ତି । ଆମ ଅଜାଣତରେ ଆମ ଭିତରେ ସେଇ ଆଦିମ ବନ୍ୟ ପ୍ରକୃତି ଆମକୁ ପ୍ରଭାବିତ କରୁଛି ।

ଆମ୍ଭେମାନେ ଘରଚାରି ପାଖରେ ଫୁଲଗଛ ଲଗାଇବାକୁ ଭଲପାଉ । ଜାଗା ନଥିଲେ ଘରଭିତରେ କୁଣ୍ଡରେ ଫୁଲଗଛ ଲଗାଉ । ଫୁଲପ୍ରତି ଏହି ଆଗ୍ରହ ଆମ ପୂର୍ବପୁରୁଷଙ୍କ ମନରେ ଥିଲା । ସେହି ଆଗ୍ରହ ଏବେବି ଅତୁଟ ଅଛି ।

ପିଲାମାନେ ଦୋଳି ଖେଳିବାକୁ ଭଲ ପାଆନ୍ତି । ଗଛ ଚଢ଼ିବାକୁ ଭଲ ପାଆନ୍ତି । ପର୍ବତ ଶିଖରକୁ ଯିବାକୁ କୌତୂହଳ ହୁଏ । ଏସବୁ ଆମ୍ଭ ପୂର୍ବପୁରୁଷଙ୍କ ସ୍ମୃତି । ବଣ ପାହାଡ଼ର ପ୍ରାକୃତିକ ସୌନ୍ଦର୍ଯ୍ୟ ଆମକୁ ଆକର୍ଷଣ କରେ । ଏହି ଆନନ୍ଦ ଆଉ କେଉଁଠାରୁ ମିଳେ ନାହିଁ ।

ଆମ୍ଭେମାନେ କ୍ରମେ ଶିକ୍ଷିତ ହେଉଛୁ । ଆମ୍ଭେମାନେ ମୂଲ୍ୟବାନ ବସ୍ତ୍ର ପିନ୍ଧୁଛୁ । ଆମର ପୂର୍ବ ପୁରୁଷ ପଶୁ ଚମଡ଼ା ଓ ପଶୁ ଲୋମରେ ନିଜ ଦେହକୁ ଘୋଡ଼ାଉ ଥିଲେ । ଏବେ

ମଧ୍ୟ ପଶୁ ଲୋମର ପୋଷାକ ଭଲ ଭଲ ସ୍ତ୍ରୀ ଲୋକମାନେ ପିନ୍ଧନ୍ତି । ଏଗୁଡ଼ିକ ଖୁବ ମୂଲ୍ୟବାନ । ମେଣ୍ଢା ଲୋମରୁ ତିଆରି



ଗରମ ପୋଷାକ ଏବେବି ଆମେ ପିନ୍ଧୁଛୁ । ଶୀତଦିନେ କମ୍ବଳ ଘୋଡ଼ାଇ ହେଉଛୁ । ସେହି ଆଦିମ ଯୁଗରୁ ଆମ ଭିତରେ ବନ୍ୟ ପ୍ରକୃତି ରହି ଆସିଛି ।

ବର୍ତ୍ତମାନ ଆମେ ବଣ ଜଙ୍ଗଲରେ ରହୁନାହୁଁ । କିନ୍ତୁ କେତେକ ଜଙ୍ଗଲୀ ଅଭ୍ୟାସ ଆମ ଭିତରେ ରହିଛି । ତେଣୁ ଅରଣ୍ୟକୁ ବୁଲି ଗଲାବେଳେ ଆମ ମନରେ ଅପୂର୍ବ ଉତ୍ସାହ ଆସେ । ନୂତନ ଶକ୍ତି ପାଇଲାପରି ଲାଗେ । ମନରେ ସରସତା ଓ ଆନନ୍ଦ ଭରିଯାଏ ।

ଦେହ ଓ ମନ ସତେଜ ରଖିବା ପାଇଁ ଜଙ୍ଗଲର ଆବଶ୍ୟକତା ରହିଛି । ଜଙ୍ଗଲ ବିନା ଆମେ ଦଣ୍ଡେ ହେଲେ ବଞ୍ଚି ପାରିବା ନାହିଁ ।

---

# ଆମ ତପୋବନ

ପୁରାଣ ଯୁଗର କଥା । ସେତେବେଳେ ମୁନି ଋଷିମାନେ ବଣ ଭିତରେ ରହୁଥିଲେ । ତପସ୍ୟା କରୁଥିଲେ । ଆଶ୍ରମଟି ବୃକ୍ଷ, ଲତାଦ୍ୱାରା ସୁଶୋଭିତ ଥିଲା । ତାହାର ନାମ ଥିଲା ତପୋବନ ।

ସେହି ତପୋବନ ଶାନ୍ତି ଓ ସୁଖର କେନ୍ଦ୍ରସ୍ଥଳ ଥିଲା । ସେଠାରେ ମୁନିକୁମାର ଓ ଅନ୍ୟାନ୍ୟ ଶିଷ୍ୟମାନେ ଆସି ପାଠ ପଢ଼ୁଥିଲେ । ମୁନି କୁମାରୀଗଣ ବିଦ୍ୟାଶିକ୍ଷା ସଙ୍ଗେ ସଙ୍ଗେ ଆଶ୍ରମର ତତ୍ତ୍ୱ ନେଉଥିଲେ । ଏହି ମୁନି ଋଷିମାନେ ଏପରି ନିର୍ଜନ ସ୍ଥାନରେ ରହି ବହୁ ଶାସ୍ତ୍ର ରଚନା କରି ଚିରଅମର ହୋଇଅଛନ୍ତି ।

ଆଶ୍ରମବାସୀଗଣ ଏହି ତପୋବନକୁ ସୁନ୍ଦର, ମନୋ-ରମ କରିବାକୁ ଆଗ୍ରହୀ ଥିଲେ । ବିଭିନ୍ନ ଫଳ, ଫୁଲ ଓ ଅନ୍ୟାନ୍ୟ ବୃକ୍ଷ ରୋପଣ କରି ଆଶ୍ରମର ସୌନ୍ଦର୍ଯ୍ୟ ବଢ଼ାଇ ଥିଲେ । ସନ୍ତାନପରି ସେଇ ଗଛଗୁଡ଼ିକର ଯତ୍ନ ନେଉଥିଲେ

ଚତୁର୍ଦ୍ଦିଗ ଫୁଲର ମହକରେ ସୁବାସିତ ହେଉଥିଲା । ନାନା ପ୍ରକାର ରସାଳ ଫଳରେ ବନଭୂମି ପୂର୍ଣ୍ଣ ହୋଇଥିଲା । ଆଶ୍ରମବାସୀ ସମସ୍ତେ ଫଳ ମୂଳ ଆହାର କରୁଥିଲେ । ଯଜ୍ଞ ପାଇଁ କାଠ ସଂଗ୍ରହ କରୁଥିଲେ । ଦୀପ ଜାଳିବା ପାଇଁ

ତେଲ ପାଉଥିଲେ । ତପୋବନରେ ସବୁ କିଛି ବ୍ୟବହାର୍ଯ୍ୟ ଜିନିଷ ପୂରି ରହୁଥିଲା ।

ତେଣୁ ତପୋବନରେ ବୃକ୍ଷ ରୋପଣ କରିବା ଆଶ୍ରମ ବାସୀଙ୍କର ପ୍ରଧାନ କାର୍ଯ୍ୟ ଥିଲା । ତହିଁରୁ ସେମାନେ ନିଜର ଆବଶ୍ୟକ ଜିନିଷ ପାଉଥିଲେ । ନିଜର ବାସଭୂମି ଗଛପାଖ ସୌନ୍ଦର୍ଯ୍ୟର ଗନ୍ତାଘର ହୋଇଥିଲା । ସେହି ନିର୍ମଳ ପରି- ବେଶରେ ସେମାନେ ସୁସ୍ଥସବଳ ଓ ନିରୋଗୀ ଥିଲେ ।



ଛୋଟ ଛୋଟ ଗଛଗୁଡ଼ିକୁ ସନ୍ତାନ ପରି ବଢ଼ାଇବାକୁ ଭାରି ଭଲ ଲାଗେ । ମନର ସମସ୍ତ ଦୁଃଖ ଅଚିରେ ଲିଭିଯାଏ । ରାମାୟଣର ସୀତାବନବାସ କଥାଟି ସମସ୍ତେ ପଢ଼ିଅଛନ୍ତି ।

ବାଲ୍ମୀକିଙ୍କର ତପୋବନରେ ରହି ପତିବ୍ରତା ସୀତା ଏହି କଠୋର ଦଣ୍ଡକୁ ଭୁଲି ଯାଇଥିଲେ ।

ସୀତା ସେତେବେଳେ ଗର୍ଭବତୀ ଥିଲେ । ବାଲ୍ମୀକି ତାଙ୍କୁ ନିଜ କନ୍ୟାପରି ରଖି ବହୁ ଉପଦେଶ ଦେଇଥିଲେ । ଆଶ୍ରମ ତପୋବନରେ ଛୋଟ ଛୋଟ ଗଛ ଲଗାଇ ତା ମୂଳରେ ପ୍ରତିଦିନ ଜଳଦାନ କରିବାକୁ ପରାମର୍ଶ ଦେଇଥିଲେ ।

ତଦ୍ୱାରା ସ୍ୱାସ୍ଥ୍ୟ ଭଲ ରହିବ । ଶିଶୁକୁ ଲାଳନ ପାଳନ କିପରି କରିବାକୁ ହେବ ତାହା ମଧ୍ୟ ଶିକ୍ଷା କରି ହେବ । ଏହି ମର୍ମରେ ଭକ୍ତକବି 'ସୀତା ବନବାସ' ପଦ୍ୟ ରଚନା କରିଅଛନ୍ତି । ଗୋଟିଏ ପଦରେ ବାଲ୍ମୀକି ସୀତାଙ୍କୁ କହିଛନ୍ତି —

"ନଦେଖିବା ଆଗରୁ ତନୟ ମୁଖ
ଲଭିବୁ ତନୟର ପାଳନ ସୁଖ" ।

ଅର୍ଥାତ୍ ସନ୍ତାନ ଜନ୍ମହେବା ପୂର୍ବରୁ ସତୀ ସୀତା ଶିଶୁପାଳନର ସମସ୍ତ ଗୁଣ ଶିଖିଥିବେ ।

ଯଥା ସମୟରେ ସୀତାଙ୍କ ଗର୍ଭରୁ ଲବକୁଶ ଯାଆଁଳା ପୁଅ ଜନ୍ମ ଲାଭ କରିଥିଲେ । ସୀତା ଏହି ତପୋବନରେ ଛୋଟ ଶିଶୁ ଦୁଇଟିକୁ ଛୋଟ ଛୋଟ ଦୁଇଟି ସୁନ୍ଦର ଗଛପରି ବଢ଼ାଇଥିଲେ ।

ସେହିପରି ଆଉ ଗୋଟିଏ ପୌରାଣିକ ଚରିତ୍ର 'ଶକୁନ୍ତଳା' । ମହର୍ଷି କଣ୍ୱ ନିଜ ଆଶ୍ରମରେ ଶକୁନ୍ତଳାକୁ ଆଶ୍ରୟ ଦେଇ-

ଥିଲେ । ତାଙ୍କର ଆଦର୍ଶରେ ଗଢ଼ା ଶକୁନ୍ତଳା ଆଶ୍ରମର ବୃକ୍ଷ-ଲତାକୁ ଗଭୀର ସ୍ନେହରେ ବଢ଼ାଇଥିଲେ । ଗଛଗୁଡ଼ିକ ମୂଳରେ ଜଳଦାନ କରିବା ତାଙ୍କର ପ୍ରତ୍ୟହ କର୍ତ୍ତବ୍ୟ ଥିଲା ।

ଶକୁନ୍ତଳା ଆଶ୍ରମ ଉଦ୍ୟାନରେ ଫୁଲ ଗଛରେ ପାଣି ଢାଳୁଥିବା ବେଳେ ରାଜା ଦୁଷ୍ମନ୍ତଙ୍କୁ ଭେଟି ଥିଲେ । ଫୁଲ-ଗଛ ଭିତରେ ଶକୁନ୍ତଳା ଠିକ୍ ଫୁଲଟିପରି ଦେଖା ହେଉ-ଥିଲେ । ପ୍ରଥମ ଦେଖାରେ ଦୁଷ୍ମନ୍ତ ଖୁବ ଖୁସିହୋଇ ଶକୁନ୍ତଳାଙ୍କୁ ସେହି ତପୋବନରେ ବିବାହ କରିଥିଲେ । ଆଶ୍ରମର ବୃକ୍ଷଲତାଗଣ ସତେ ଯେପରି ଜୀବନ୍ତ ହୋଇ ଶକୁନ୍ତଳାଙ୍କୁ ଆଶୀର୍ବାଦ ଦେଇଥିଲେ ।

ମଣିଷ ପ୍ରତି ବୃକ୍ଷଲତାଗଣ କିପରି ସହାନୁଭୂତିଶୀଳ ତାହା ଏହି ତପୋବନରୁ ପ୍ରମାଣ ମିଳେ ।

# ଜଙ୍ଗଲ କାଟିପକାଇବାର ବିପଦ

ଆମେ ଓଡ଼ିଆ ଜାତି । ଓଡ଼ିଶା ପ୍ରଦେଶରେ ଆମ ଘର । ଦିନ ଥିଲା, ଏଇ ଓଡ଼ିଶାରେ ବଣ ଜଙ୍ଗଲ ଘେରି ରହିଥିଲା । ଆମ ରାଜ୍ୟରେ ଭୂଭାଗର ଶତକଡ଼ା ୩୮ ଭାଗ ଅଞ୍ଚଳ ବନଭୂମି ଥିଲା । ବହୁ ଜୀବଜନ୍ତୁ ଏହି ଅରଣ୍ୟରେ ବାସ କରୁଥିଲେ । କ୍ରମେ ଲୋକଙ୍କ ସଂଖ୍ୟା ବୃଦ୍ଧି ହେଲା । କାଠ କାଟି ସେମାନେ ନିଜ ଗୃହଦ୍ୱାର ମେଣ୍ଟାଇଲେ । ଗଛ ହାଣିବା ଯୋଗୁଁ ବନଭୂମି କ୍ରମଶଃ କମିବାକୁ ଲାଗିଲା ।

ଏବେ ହିସାବରୁ ଜଣାଯାଏ ଆମ ରାଜ୍ୟରେ ଭୂଭାଗର ମାତ୍ର ୨୦ ଭାଗ ଅଞ୍ଚଳରେ ଜଙ୍ଗଲ ସୀମିତ ହେଲାଣି । କ୍ରମେ-କ୍ରମେ ଏହା ଆହୁରି ହ୍ରାସ ପାଉଛି । ମଣିଷ ଆଜି ନିଜ ସୁବିଧା ପାଇଁ ପାଗଳ । ନିଜର ଆବଶ୍ୟକ ପାଇଁ ଅବଚୋରିତ ଭାବେ ଜଙ୍ଗଲରୁ ବିନାନୁମତିରେ କାଠ କାଟୁଛି । ଚୋରା କାଠ ବ୍ୟବସାୟୀମାନେ କାଠ ଚୋରି କରି ପ୍ରଚୁର ଲାଭବାନ ହେଉଅଛନ୍ତି ।

ଆଦିବାସୀମାନେ ପୋଡ଼ୁ ଚାଷ ପାଇଁ ମଧ୍ୟ ଜଙ୍ଗଲ ସଫା କରୁଅଛନ୍ତି । କାଠବିକ୍ରୀ କରି ଜୀବିକା ଅର୍ଜନ କରୁଅଛନ୍ତି । ତା' ଛଡ଼ା ନୂତନ ଜନବସତି, ରାସ୍ତାଘାଟ ନିର୍ମାଣ, ଶିଳ୍ପ ବିକାଶ ପାଇଁ ମଧ୍ୟ ବହୁତ ଜଙ୍ଗଲ ହଣା ହୋଇଯାଉଛି । ଏହାଦ୍ୱାରା ଏକ ଭୟାବହ ପରିସ୍ଥିତି ସୃଷ୍ଟି ହୋଇଅଛି ।

ଲୋକମାନେ ଭବିଷ୍ୟତ ଚିନ୍ତା ନକରି ଗଛକାଟି ଚାଲିଅଛନ୍ତି । ଗଛ ନଥିବା ସ୍ଥାନ କ୍ରମେ ଉର୍ବର ଶକ୍ତି ହରାଉଛି । ମାଟି ଧୋଇ ହୋଇ ଯାଉଅଛି ।

ଗଛ ନଥିବା ସ୍ଥାନରେ ବର୍ଷା ହେବ ନାହିଁ । କାରଣ ଗଛ ଥିଲେ ଜଳବାୟୁ ଆର୍ଦ୍ର ରହେ ଓ ମେଘକୁ ଆକର୍ଷଣ



କରେ । ଗଛ ନଥିବା ସ୍ଥାନ କ୍ରମେ ମରୁଭୂମି ପାଲଟି ଯାଏ । କୂଅ, ନଦୀ, ହ୍ରଦ ମଧ୍ୟ ଶୁଖିଯାଏ । ଏଥିରୁ ଜଣାଯାଉଛି, ଜଙ୍ଗଲ ଲୋପ ହେଲେ ମନୁଷ୍ୟ ଜାତି ବି ଲୋପ ହୋଇଯିବ ।

ଗଛ ଆମକୁ ଅନେକ ପ୍ରାକୃତିକ ବିପଦରୁ ରକ୍ଷାକରେ । ବନ୍ୟା, ବାତ୍ୟାର ପ୍ରକୋପକୁ ଗଛ ଅଟକାଇ ରଖେ । ପାଣି ଓ ପବନର ଶକ୍ତିକୁ ଅବରୋଧ କରି ମନୁଷ୍ୟକୁ ରକ୍ଷା କରେ ।

ଗଛ କାଟି ଦେଲେ ବାତ୍ୟା ଓ ବନ୍ୟାରେ ଘରଦ୍ୱାର ଭାଙ୍ଗି-ଯିବ । ଲୋକମାନେ ଆଶ୍ରୟ ହୀନ ହୋଇପଡ଼ିବେ । ବସିବା ପାଇଁ ଗଛ ମୂଳ ବି ମିଳିବ ନାହିଁ ।

ଶିଶୁଟି ଜନ୍ମ ହେବା ପୂର୍ବରୁ ମାଆ ବକ୍ଷରେ କ୍ଷୀର ସୃଷ୍ଟି ହୋଇଥାଏ । ସିମିତ ମନୁଷ୍ୟ ବଞ୍ଚି ରହିବା ପାଇଁ ଈଶ୍ୱର ଏ ବୃକ୍ଷ ଲତାକୁ ସୃଷ୍ଟି କରିଅଛନ୍ତି । ବୃକ୍ଷ ନଥିଲେ ମନୁଷ୍ୟ ଜୀବନ ଧାରଣ କରିବା ଅସମ୍ଭବ ହୋଇଥାଆନ୍ତା । ମନୁଷ୍ୟ ପ୍ରଶ୍ୱାସରେ ଗ୍ରହଣ କରୁଥିବା ଅମ୍ଳଜାନ ବାୟୁ କେବଳ ଗଛହିଁ ଦେଇଥାଏ । ସେଥିପାଇଁ ବୃକ୍ଷଲତା ଘେରା



ସ୍ଥାନରେ ବୁଲିବାକୁ ଭଲ ଲାଗେ । ନିର୍ମଳ ବାୟୁ ଆମ ଦେହ ଭିତରକୁ ଯାଇ ରୋଗ ମୂଳକୁ ଦୂର କରେ ।

ମନୁଷ୍ୟର ବଞ୍ଚିବା ପାଇଁ ବାୟୁ ଯେପରି ଦରକାର, ସେହିପରି ଜଳ ମଧ୍ୟ ଦରକାର । ଜଳ ସଂରକ୍ଷଣ କ୍ଷେତ୍ରରେ ବୃକ୍ଷର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଗଛ ମେଘ ଖଣ୍ଡରୁ ଜଳ ଶୋଷଣ କରି ନିଜ ପାଦ ଦେଶରେ ସାଇତି ରଖେ । ଆମେ ମାଟି ଖୋଳିଲେ ପାଣି ପାଉଁ । କୂପ ବା ନଳ କୂପରୁ ନିର୍ମଳ ଜଳ ବାହାରେ । ମରୁଭୂମିରେ ବା ଟାଙ୍ଗରା ଜାଗାରେ ଯେତେ ଖୋଳିଲେ ବି ପାଣି ମିଳେ ନାହିଁ ।

ଗୋଟିଏ ଗଛର ପରମାୟୁ ହାରାହାରି ପଚାଶ ବର୍ଷ । ଏହି ପଚାଶ ବର୍ଷ କାଳ ସେ କେବଳ ସମାଜର ମଙ୍ଗଳ କରି ଚାଲିଛି । ସେ ଏହି କାର୍ଯ୍ୟ ନିଃସ୍ୱାର୍ଥପର ଭାବେ କରୁଛି । ନିଜ ଜୀବନ ବିନିମୟରେ ସେ ମନୁଷ୍ୟ ଜୀବନକୁ ରକ୍ଷା କରିଛି । ଗୋଟିଏ ବୃକ୍ଷ ସମାଜର ଯେତିକି ସେବା କରେ ତାହା ହାରାହାରି ପନ୍ଦର ଲକ୍ଷ ଟଙ୍କା ସହ ସମାନ । କିନ୍ତୁ ଦୁଃଖର କଥା ମଣିଷ ଏହି ଉପକାରୀ ବନ୍ଧୁଟିକୁ ଅନ୍ଧ ଭାବରେ ହାଣି ଯାଉଛି ।

ଜଙ୍ଗଲ କାଟିବା ଦ୍ୱାରା ଭବିଷ୍ୟତ ବିପଦ ପୂର୍ଣ୍ଣ ହେବ । ମଣିଷ ଜାତି ଘୋର ସଙ୍କଟର ସମ୍ମୁଖୀନ ହେବ । ସେଥିପାଇଁ ଆମ ସରକାର ଲୋକମାନଙ୍କୁ ଚେତାବନୀ ଦେଉଅଛନ୍ତି । ଗଛ ନକାଟିବାକୁ ପ୍ରତ୍ୟେକ ଲୋକକୁ ପରାମର୍ଶ ଦିଆଯାଉଛି ।

# ସାମାଜିକ ବନ ପ୍ରକଳ୍ପ

ଆମ ରାଜ୍ୟରେ ଶତକଡ଼ା ୮୦ ଭାଗ ଲୋକ ଗ୍ରାମାଞ୍ଚଳରେ ବାସ କରନ୍ତି । ଧନ ଥିଲା, ଗାଁ କଡ଼କୁ ଲାଗି ଜଙ୍ଗଲ ଢେର ରହିଥିଲା । ସେଠାରୁ ଲୋକମାନେ ଜାଳେଣି କାଠ ପାଉ-ଥିଲେ । ପ୍ରତିଦିନର ଆବଶ୍ୟକ କାଠ ସେମାନେ ଜଙ୍ଗଲରୁ ସଂଗ୍ରହ କରୁଥିଲେ । ତା'ଛଡ଼ା ବନଜାତ ଦ୍ରବ୍ୟ ସଂଗ୍ରହ କରି ସାମୟିକ ଭାବେ ଜୀବିକା ନିର୍ବାହ ମଧ୍ୟ କରୁଥିଲେ । ଏବେ ମଧ୍ୟ ଅରଣ୍ୟରୁ ହରିଡ଼ା, ବାହାଡ଼ା, ଅଁଳା, କେନ୍ଦୁପତ୍ର, ଶାଳପତ୍ର ତେନ୍ତୁଳି, ମହୁଲ, ପାଳୁଅ, ଝୁଣା, ମହୁ, ଶାଳ-ମଞ୍ଜି ଇତ୍ୟାଦି ବହୁ ଜିନିଷ ସଂଗ୍ରହ କରି ଲୋକେ ପେଟ ପୋଷନ୍ତି ।

କ୍ରମେ ଲୋକ ସଂଖ୍ୟା ବଢ଼ିଲା । ଲୋକମାନେ ବିଶେଷତଃ ଜାଳେଣି କାଠ ପାଇଁ ଗଛ କାଟିବାକୁ ଲାଗିଲେ । ଆଜିକାଲି କେତେକ ଉନ୍ନତ ଚୁଲା ପ୍ରସ୍ତୁତ ହୋଇ ଗ୍ୟାସ ବା ବିଦ୍ୟୁତ ଶକ୍ତି ସାହାଯ୍ୟରେ ଚାଲୁଛି । ମାତ୍ର ଗ୍ରାମାଞ୍ଚଳରେ ସେ ସବୁ ଚୁଲା ପ୍ରଚଳନ ହୋଇନାହିଁ । ସେ ସବୁ ବ୍ୟୟ ସାପେକ୍ଷ । ଗୋବର, ଖତ ପାଇଁ ବ୍ୟବହୃତ ହେଉଥିବାରୁ ଗୋବର ଗ୍ୟାସ ଚୁଲି ପ୍ରତି ଲୋକଙ୍କର ଆଗ୍ରହ ଆଶାନୁରୂପ ନୁହେଁ ।

ଏବେ ଏକ ନୂତନ ଧରଣର ଚୂଲ୍ ପ୍ରସ୍ତୁତ ହେଲାଣି । ସୂର୍ଯ୍ୟ କିରଣ ଦ୍ୱାରା ଏହି ଚୂଲି ଉତ୍ତାପ ପାଇବ । ଏହାକୁ ସୂର୍ଯ୍ୟ ଚୂଲ୍ କୁହାଯାଏ । ଏହାର ମଧ୍ଯ ପ୍ରସାର ଗ୍ରାମାଞ୍ଚଳକୁ ହୋଇନାହିଁ ।

ତେଣୁ ଏତେ ବିପୁଳ ସଂଖ୍ୟାର ଲୋକେ କିପରି ରାନ୍ଧିବେ ? ପେଟ ଗଣ୍ଡିକ ପାଇଁ ଏ ସଂସାରରେ ସବୁ ନାଟ ଲାଗିଛି । ସରକାର ଯେତେ ମନା କଲେ କି ମଣିଷ କଣ ମାନୁଛି ? ଆଇନ୍ ଭାଙ୍ଗି ଜଙ୍ଗଲରୁ କାଠ ଚୋରୀ କରୁଛି । ନିଜ ଗୁଜୁରାଣ ମେଣ୍ଟାଉଛି । ବନ ବିଭାଗରେ ଯେତେ କର୍ମଚାରୀ ଅଛନ୍ତି, ସେମାନେ ସଂଖ୍ୟାରେ କମ । ତେଣୁ ଅବିଚ୍ଛିନ୍ନ ଭାବେ କାଠ କାଟିବା ଅପରାଧକୁ ରୋକା ହୋଇନାହିଁ । ଜଙ୍ଗଲ ସବୁ କ୍ରମେ କ୍ରମେ ଲୋପ ପାଇବାକୁ ଲାଗିଲାଣି । ଏହାର ପରିଣତି ଯେ କି ଭୟାବହ, ତାହା ସାଧାରଣ ଲୋକେ ବୁଝିପାରୁ ନାହାନ୍ତି ।

ଗାଁ ଗଣ୍ଡା ନିକଟରେ ଯେଉଁ ଜଙ୍ଗଲ ଥିଲା ତାହା ଆଉ ନାହିଁ । ଲୋକମାନେ କାଠ ସଂଗ୍ରହ କରିବାକୁ ଏବେ ବହୁତ ଦୂରକୁ ଯିବାକୁ ପଡ଼ୁଛି । ଘର କରିବା ପାଇଁ ବା କୃଷି ଉପକରଣ ପାଇଁ କାଠ ନିକଟରେ ମିଳୁନାହିଁ । କାଠର ମୂଲ୍ୟ ବଢ଼ି ବଢ଼ି ଚାଲିଛି ।

ତେଣୁ ଗାଁ ଗଣ୍ଡାକୁ ପୁଣି ଗଛ ଲତାରେ ପୂର୍ଣ୍ଣ କରିବାକୁ ହେବ । ଲୋକମାନେ ଦୈନନ୍ଦିନ ଚାହିଦା ମେଣ୍ଟାଇବା ପାଇଁ ପାଖ ଜଙ୍ଗଲରୁ କାଠପାଇ ପାରିବେ । ଖାଦ୍ୟ ରାନ୍ଧି ପାରିବେ ।

ଏଥିପାଇଁ ଆମ୍ଭମାନଙ୍କୁ ନୂତନ ଜଙ୍ଗଲ ସୃଷ୍ଟି କରିବାକୁ ପଡ଼ିବ । ଗାଁ ପାଖକୁ ଜଙ୍ଗଲ ଫେରାଇ ଆଣିବାକୁ ପଡ଼ିବ । ଗାଁ ମାନଙ୍କରେ ପଡ଼ିଆ, ରାସ୍ତାକଡ଼, ଅନାବାଦୀ ଜମି, ଉଜାଡ଼ି ଯାଇଥିବା ଜଙ୍ଗଲ, ପୋଖରୀ ହୁଡ଼ା, କ୍ଷେତ କଡ ଓ ବାଡ଼ି ବଗିଚାରେ ଛୋଟ ବୋଟ ଜଙ୍ଗଲ ସୃଷ୍ଟି କରିବାକୁ ହେବ । ବିଦ୍ୟାଳୟରେ ନୂତନ ଗଛ ଲଗାଇ ଉଦ୍ୟାନ ସୃଷ୍ଟି କରିବାକୁ ଛାତ୍ରମାନେ ଆଗ୍ରହୀ ହେବେ । ଏହାକୁ ସାମାଜିକ ବନ ପ୍ରକଳ୍ପ ବା ସାମାଜିକ ବନୀ-କରଣ କୁହାଯାଏ ।



ଏହି ଯୋଜନାକୁ କାର୍ଯ୍ୟକାରୀ କରିବାକୁ ସରକାର ସବୁ ପ୍ରକାର ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି । ସରକାରୀ

ସାହାଯ୍ୟରେ ଗ୍ରାମବାସୀମାନେ ଏହାର ସୁଯୋଗ ନେବା ଉଚିତ । ଏହା କଲେ କାଠ ଜାଳେଣି ମେଣ୍ଟିବା ସଙ୍ଗେ ସଙ୍ଗେ ପ୍ରାକୃତିକ ପରିବେଶ ମଧ୍ୟ ସୁରକ୍ଷା ହେବ । ଲୋକମାନେ ସ୍ୱାସ୍ଥ୍ୟବାନ ଓ ନିରୋଗ ହୋଇ ପାରିବେ ।

ଏହି ସାମାଜିକ ବନ-ପ୍ରକଳ୍ପକୁ କାର୍ଯ୍ୟକାରୀ କରିବା ପାଇଁ ଗ୍ରାମାଞ୍ଚଳରେ ବନ-ସେବକ ନିଯୁକ୍ତ ହୋଇ ଅଛନ୍ତି । ସେମାନେ ପ୍ରତ୍ୟେକ ଗ୍ରାମବାସୀଙ୍କୁ ମାଗଣାରେ ୨୫୦ ପର୍ଯ୍ୟନ୍ତ ଚାରାଗଛ ଯୋଗାଇ ଦେଇ ପାରିବେ । ଗ୍ରାମବାସୀମାନେ ସଂଘବଦ୍ଧ ହୋଇ ଏହି ବୃକ୍ଷ ରୋପଣ କାର୍ଯ୍ୟରେ ଲାଗିପଡ଼ିବା ଉଚିତ୍ ତାହାହେଲେ ଅଳ୍ପଦିନ ଭିତରେ ଛୋଟ ଛୋଟ ଜଙ୍ଗଲ ସୃଷ୍ଟି ହେବ । ଲୋକମାନଙ୍କର ଦୁଃଖ ଯିବ ।

ଏହି ଜଙ୍ଗଲର ରକ୍ଷଣାବେକ୍ଷଣ ପାଇଁ ଗ୍ରାମବାସୀମାନେ ନିଜେ ଦାୟିତ୍ୱ ନେବେ । ଏହି ଗ୍ରାମ୍ୟ ଜଙ୍ଗଲ ଗୁଡ଼ିକର ମାଲିକ ସେହି ଗ୍ରାମବାସୀମାନେହିଁ ହେବେ ।

ଯେଉଁ ମାନଙ୍କର ନିଜ ବାଡ଼ି ବଗିଚା ଅଛି, ସେମାନେ ସହଜରେ ନୂତନ ଗଛ ଲଗାଇ ପାରିବେ । ନିଜ ଜାଳେଣି ନିଜେ ମେଣ୍ଟାଇ ପାରିବେ । ଭୂମିହୀନ ଲୋକଙ୍କୁ ମଧ୍ୟ ସରକାର ଜଙ୍ଗଲ ଚାଷ କରିବାପାଇଁ ଥଇଥାନ କରୁଅଛନ୍ତି ଓ ମାଗଣାରେ ସେମାନଙ୍କୁ ଚାରାଗଛ ବାଣ୍ଟୁଅଛନ୍ତି । ଏହି ଚାରାଗଛ ପ୍ରସ୍ତୁତ କରିବା ପାଇଁ ଛୋଟ ଛୋଟ ନର୍ସରୀ ଗଠିତ ହୋଇଛି । ଲୋକମାନେ ସେଠାରୁ ଚାରାଗଛ ପାଇ ପାରିବେ । ଏଥିପାଇଁ

ଲୋକମାନେ ସରକାରଙ୍କ ବନବିଭାଗ ସହିତ ଯୋଗା-ଯୋଗ କଲେ ସମସ୍ତ ସୁଫଳ ପାଇ ପାରିବେ ।

ଯେଉଁ ବ୍ୟକ୍ତି ଜଙ୍ଗଲ ସୁରକ୍ଷା ପାଇଁ କାର୍ଯ୍ୟ ଦକ୍ଷତା ଦେଖାଇ ପାରିବ, ସେ ସରକାରଙ୍କ ତରଫରୁ 'ପ୍ରକୃତି ମିତ୍ର' ପୁରସ୍କାର ଲାଭ କରିବ । ଏହାର ମୂଲ୍ୟ ୫ ହଜାର ଟଙ୍କା ଅଟେ । ସେହିପରି ଭାରତ ସରକାର 'ଇନ୍ଦିରା ମିତ୍ର' ପୁରସ୍କାର ମଧ୍ୟ ଦେଉଅଛନ୍ତି । ଜଙ୍ଗଲ ରକ୍ଷାକରିବା ଓ ନୂତନ ଜଙ୍ଗଲ ସୃଷ୍ଟି କରିବା ପାଇଁ ଲୋକମାନଙ୍କୁ ସବୁ ପ୍ରକାର ସାହାଯ୍ୟ ଓ ସୁଯୋଗ ଦିଆଯାଉଛି ।

ଏହି ଯୋଜନା ଦ୍ୱାରା ଲୋକମାନେ କାଠ ପାଇଁ ଆତ୍ମ-ନିର୍ଭରଶୀଳ ହେବେ । ସରକାରୀ ଜଙ୍ଗଲ ସବୁ ରକ୍ଷା ପାଇବ । ସବୁ ପ୍ରକାର ପ୍ରାକୃତିକ ବିପଦରୁ ଦେଶ ରକ୍ଷା ପାଇବ । ସାଧାରଣ ଲୋକେ ସୁଖରେ ରହି ପାରିବେ ।

---

## ଦାରିଦ୍ର୍ୟ ଦୂରୀକରଣ

ଆମ ରାଜ୍ୟରେ ଅଧିକାଂଶ ଲୋକ ଦରିଦ୍ର । ଶିକ୍ଷିତ ମାନଙ୍କ ମଧ୍ୟରେ ଅନେକ ବେକାର । ଖଟିଖିଆଙ୍କ ପାଇଁ କାମ ଅଭାବ । ଏ ଅବସ୍ଥାକୁ ବଦଳାଇବା ପାଇଁ ସାମାଜିକ

ବନ ପ୍ରକଳ୍ପ ଖୁବ୍ ସାହାଯ୍ୟ କରିବ । ସମସ୍ତେ ମିଶି ଗ୍ରାମର ସମୂହ ଉନ୍ନତି କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଆତ୍ମ-ନିର୍ଭର ଶୀଳ ହେବେ ।

ସାମାଜିକ ବନପ୍ରକଳ୍ପର ସଫଳ ହେଲେ ଗ୍ରାମ୍ୟ ଅର୍ଥ ନୀତି ସୁଦୃଢ଼ ହେବ । ଏହା ଲୋକମାନଙ୍କୁ ଖାଦ୍ୟ, ବସ୍ତ୍ର ଓ ବାସଗୃହ ଯୋଗାଇ ପାରିବ । ଲୋକମାନେ କାମ କରି ମଜୁରୀ ପାଇବେ । ସାମାଜିକ ବନୀକରଣରେ ଗାତ ଖୋଳିବା, ବୃକ୍ଷ ରୋପଣ କରିବା, ଘେର ପ୍ରସ୍ତୁତ କରିବା, ଜଙ୍ଗଲ ଜାତ ଦ୍ରବ୍ୟ ସଂଗ୍ରହ କରି ବିକ୍ରୀ କରିବା ଦ୍ୱାରା ବିଭିନ୍ନ ପ୍ରକାର ନିଯୁକ୍ତି ମିଳିପାରିବ ।

କୁଟୀର ଶିଳ୍ପର ବିକାଶ ସାମାଜିକ ବନ ପ୍ରକଳ୍ପର ଆଉ ଏକ ଅବଦାନ । ବିଡ଼ି ତିଆରି ପାଇଁ କେନ୍ଦୁପତ୍ର ଖେଳନା ପାଇଁ ଗିମିଳିକାଠ, ତେଲ ଶିଳ୍ପର ଉନ୍ନତି ପାଇଁ ମହୁଆ, କାଜୁ, ନିମ୍ବ, କରଞ୍ଜ, ଇଉକାଲିପଟସ ଇତ୍ୟାଦି ଗଛ, ଏହି ପ୍ରକଳ୍ପ ଦ୍ୱାରା ଗ୍ରାମାଞ୍ଚଳରେ ପ୍ରଚୁର ମିଳିପାରିବ । ତାହା ଛଡ଼ା ବାଉଁଶ ଗଛର ଉପକାରୀତା ସମସ୍ତଙ୍କୁ ଜଣା । ଏବେ ସବୁ ପ୍ରକାର କାଗଜ ବାଉଁଶ ଓ ଘାସରୁ ପ୍ରସ୍ତୁତ ହେଉଅଛି । ତେଣୁ ବାଉଁଶ ଓ ଘାସଚାଷ ଖୁବ୍ ଅର୍ଥ କରି ଏବଂ ଏହି ପ୍ରକଳ୍ପର ଅନ୍ତର୍ଗତ ।

ଲୋକମାନେ ଏହି ଯୋଜନାକୁ କାର୍ଯ୍ୟକାରୀ କଲେ ସେମାନଙ୍କର ଦାରିଦ୍ର୍ୟ ଦୂର ହୋଇ ଯିବ । ଗାଁ ଗଣ୍ଡାର ରୂପ ବଦଳିଯିବ । ଲୋକମାନେ ସ୍ୱଚ୍ଛଳ ଭାବରେ ବସବାସ କରିବେ ।



ଲୋକମାନେ ଭଲରେ ରହିଲେ, ଗାଁକୁ ଲୋକମାନେ ଫେରି ଆସିବେ । ସହର ପ୍ରତି ଅଯଥା ମୋହ କଟିଯିବ । ଶିକ୍ଷିତ ବେକାର ମାନେ ଗାଁରେ କର୍ମ ନିଯୁକ୍ତି ପାଇ ଆନନ୍ଦରେ ରହିବେ । ଗ୍ରାମ୍ୟ ଜୀବନ ମଧୁମୟ ହେବ ।

---

# ଆଦର୍ଶ ବିଦ୍ୟାଳୟ

ଆମ୍ଭେମାନେ ଯେଉଁଠି ପାଠ ପଢୁଛୁ, ତାହା ଆମ୍ଭର ବିଦ୍ୟାଳୟ । ସେଠାକୁ ଯାଇଁ ଆମ୍ଭେମାନେ ଶିକ୍ଷକଙ୍କ ଠାରୁ ବିଦ୍ୟାଲାଭ କରୁଛୁ । ତାହାଛଡ଼ା ଆମ୍ଭର ଅନେକ ଭଲକଥା



ବିଦ୍ୟାଳୟରୁ ଶିକ୍ଷା କରୁଛୁ । ତେଣୁ ଏହି ବିଦ୍ୟାଳୟକୁ ସରସ ସୁନ୍ଦର କରି ଗଢିବା ପ୍ରତ୍ୟେକ ଛାତ୍ରର କର୍ତ୍ତବ୍ୟ । ତାହାହେଲେ ଏହା ଗୋଟିଏ ଆଦର୍ଶ ବିଦ୍ୟାଳୟରେ ପରିଣତ ହେବ ।

ସଫାସୁତୁରା ରହିବା ଗୋଟିଏ ଭଲ ଗୁଣ । ସଫା ପୋଷାକ ପିନ୍ଧି ପଢ଼ିଲେ ପାଠ ମନେରହେ । ନିଜକୁ ସଫା ସୁତୁରା ରଖିବା ସଙ୍ଗେସଙ୍ଗେ ବିଦ୍ୟାଳୟକୁ ମଧ୍ୟ ସଫା ସୁତୁରା ରଖିବା । ସ୍କୁଲ ଆଗରେ ଫୁଲଗଛ ଲଗାଇବା । ସ୍କୁଲ ପୋଖରୀ ଚାରି ପାଖରେ ନଡ଼ିଆ ଗଛ, କଦଳୀ ଗଛ ଓ ଅନ୍ୟାନ୍ୟ ଫଳଗଛ ଲଗାଇ ସ୍ଥାନଟିକୁ ସୁନ୍ଦର କରିବା । ତାହାଛଡ଼ା ପରିବା ଚାଷ କରି ଆମ ଖାଦ୍ୟ ସମସ୍ୟା ଦୂର କରିବା । ସ୍କୁଲ ଶେଷ ହେଲେ ଏହି ବଗିଚାରେ କାମ କରିବା । ତାହାହେଲେ ଦେହ ସୁସ୍ଥ ରହିବ । ମନ ଆନନ୍ଦରେ ଭରି ଉଠିବ । ଗଛ ଯେତେବେଳେ ଫୁଲ ଓ ଫଳରେ ଭରିଯିବ. ସେତେବେଳେ ଆମ୍ଭମାନଙ୍କର ଖୁସିର ସୀମା ରହିବ ନାହିଁ ।

ଯେତେବେଳେ ପରିଦର୍ଶକଗଣ ଆମ ସ୍କୁଲକୁ ଆସିବେ ସେମାନେ ଆମ୍ଭ କାର୍ଯ୍ୟକୁ ପ୍ରଶଂସା କରିବେ । ଆମ୍ଭେମାନେ ଅତିଥିଙ୍କୁ ନାନା ଜାତିର ଫଳ ଓ ଫୁଲ ଉପହାର ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିବା ।

ବିଦ୍ୟାଳୟ ଚାରି ପାଖରେ ଗଛ ଲଗାଇ ସ୍ଥାନଗୁଡ଼ିକୁ ସବୁଜ ସୁନ୍ଦର କରିବା । ଫୁଲର ମହକରେ ଚାରିଆଡ଼ ସୁବାସିତ ହେବ । ଆମ୍ଭେମାନେ ନିର୍ମଳ ବାୟୁ ସେବନ କରି ଦେହକୁ

ସୁସ୍ଥ ରଖିବା । ଗଛ ଆମ୍ଭମାନଙ୍କର ପରମ ମିତ୍ର । ସେ ରହିଲେ ଆମ୍ଭେମାନେ ରହିବା । ଗଛ ନ ଥିଲେ ଆମ୍ଭେମାନେ



ରୋଗରେ ପଡ଼ିବା । ତେଣୁ ସ୍କୁଲ ଘର ପାଖରେ ଓ ପୋଖରୀ ଘର ପାଖରେ ନାନା ଜାତର ଗଛ ଲଗାଇ ପରିବେଶକୁ ସୁନ୍ଦର ରଖିବା ।

ଗଛରେ ଫଳଟିଏ ପାଚିଲେ ମନ ଆନନ୍ଦରେ ପୂରି ଉଠିବ । ଆମ୍ଭେମାନେ ତାହା ଖାଇ ତୃପ୍ତି ଅନୁଭବ କରିବା । ଅଧିକ ଫଳ ଉତ୍ପନ୍ନ ହେଲେ, ତାହା ବଜାରରେ ବିକ୍ରୀ ହୋଇପାରିବ । ସେହି ଧନରେ ସ୍କୁଲ ଘରର ଉନ୍ନତି କରିବା ।

ପାଠ ପଢିବା ସଙ୍ଗେ ସଙ୍ଗେ ଆମ୍ଭେମାନେ ପ୍ରକୃତି ସହିତ ମିତ୍ରତା କରିବା । ଗଛ ଲତାକୁ ଭଲ ପାଇବା । ଗଛ ମୂଳରେ ପାଣିଦେଇ ତାହାଙ୍କୁ ବଢ଼ାଇବା । ତାକୁ କାଟିବା ନାହିଁ କି ନଷ୍ଟ କରିବା ନାହିଁ ।

ଠିକ୍ ସେହିପରି ଆମ୍ଭମାନଙ୍କର ବାସ କରୁଥିବା ଘର ଚାରି ପାଖକୁ ଗଛ ଲତାରେ ପୂର୍ଣ୍ଣ କରିବା । ବଡ଼ହେଲେ ଏହି ବାଡ଼ ବଗିଚାରୁ ଫଳ ଓ ପରିବା ଆମଦାନୀ କରିବା । ତଟକା ଫଳ ଓ ପରିବା ଆମ୍ଭ ଶରୀରକୁ ହିତକର ।

ପିଲାଟି ଦିନରୁ ଗଛକୁ ଭଲ ପାଇଲେ, ବଡ଼ ଦିନକୁ ଏହି ଗଛ ଆମ୍ଭର ବହୁତ ଉପକାର କରିବ । କାମ କରିବାକୁ ଶକ୍ତି ଓ ଉତ୍ସାହ ଯୋଗାଇ ଦେବ । ରାନ୍ଧିବା ପାଇଁ କାଠ ଯୋଗାଇ ଦେବ । ଗଛ ପରି ପରମ ମିତ୍ର ଏ ସଂସାରରେ ଆଉ କିଛି ନାହିଁ ।



---

Published in Oriya language by
Orissa Jagannath Company, Cuttack-753002
Price Rs 6-00